# ମନ ଭୂଇଁ ଓ ରୋଗ



ଡାକ୍ତର କେଶବ ଚନ୍ଦ୍ର ସାହୁ

# ମନ ଭୂଇଁ ଓ ରୋଗ


ଲେଖକ :

ଡାକ୍ତର କେଶବ ଚନ୍ଦ୍ର ସାହୁ



ଜାଗରଣ ପ୍ରକାଶନୀ

ଝଣ୍ଣିନାବର, ଦାସ ସାହୁ, କଟକ-୭୫୩୦୧୨

# ମନ ଭୂଇଁ ଓ ରୋଗ

ଲେଖକ : ଡାକ୍ତର କେଶବ ଚନ୍ଦ୍ର ସାହୁ
ପ୍ରଫେସର ପଡ଼ା, କଟକ-୨

ପ୍ରକାଶକ : ଚୌଧୁରୀ ବଚ୍ଛାନନ୍ଦ ନନ୍ଦ
ବଣିନାବର, ଦାସ ସାହି
କଟକ-୭୫୩୦୧୨

ମୁଦ୍ରଣ : ଯୁବ ପ୍ରିଣ୍ଟର୍ସ, କଟକ-୭୫୩୦୧୨

ପ୍ରକାଶନ କାଳ : ୧୯୯୧

ମୂଲ୍ୟ : ଟ ୫.୦୦

# ମନଭୂଇଁ ଓ ରୋଗ

ମଣିଷ କେବଳ ଭାତ ରୋଟିରେ ବଞ୍ଚେନା । ବଞ୍ଚେ ସ୍ନେହ, ଶ୍ରଦ୍ଧା ଓ ପ୍ରେମରେ । ଏହାର ଅଭାବ ହେଲେ ବା ତା ବଦଳରେ ତାଡନା ହେଲେ ତା ମନରେ ଦୁଃଖ ଆସେ । ସେ ରୋଗ ଭୋଗକରେ ।

୧

ଲିଭରପୁଲ ବିଲାତର ସହର ଓ ବନ୍ଦର । ସେଠାରେ ଗୋଟିଏ ମେମଙ୍କର ଦୁଇଟି ପିଲା । ଗୋଟିଏ ୪ ବର୍ଷର,



ଅନ୍ୟଟି ୪ ମାସର । ସାନ ପିଲାଟି ମା'ର କ୍ଷୀର ଖାଏ । ତା ପାଖରେ ଶୁଏ । ବଡ଼ଟିର ହିଂସା ହେଲା । ଦେଖୁ ଦେଖୁ ତା ଗୋଡ଼ରେ ବଇଁଚ ହେଲା । ପରେ ଧଇଁ ରୋଗ ବାହାରିଲା । ତାକୁ ଡାକ୍ତର ଖାନାକୁ ନେଲେ । ଡାକ୍ତର ସବୁ ପଚାରି ବୁଝିଲେ। ମା'କୁ ବୁଝାଇଲେ । ସ୍ନେହ ଶ୍ରଦ୍ଧାର ଅଭାବ ·ଆଣିଲା· ମନରେ ଦୁଃଖ କଷ୍ଟ । ସେ ରୋଗକଲା ଧଇଁ ଓ ବଇଁଚ ରୋଗ ।

୨

ନିହାରିକା ୧୦ ବର୍ଷର ଝିଅ । ତାର ମା ବାବାଙ୍କର ଗୋଟିଏ ଝିଅ । ତାକୁ ସେ ଭଲ ପାଆନ୍ତି । ତାର ଏକଜିମା



ରୋଗ ହେଲା । ତାର ପିତା ମାତାଙ୍କର ଏ ରୋଗ ନଥିଲା । ସ୍କୁଲରେ ଶିକ୍ଷକଙ୍କର ତାଡ଼ନା ତାର ଏକଜିମାର କାରଣ

ବୋଲି ବିଶେଷଜ୍ଞ ମତ ଦେଲେ । ସ୍କୁଲରେ ସୁବନ୍ଦୋବସ୍ତ ଓ ଚିକିତ୍ସାରେ ଭଲହେଲା ।

୩

ଜଣେ ମୋଚି ସମୁଦ୍ର କୂଳରେ ଥିଲା । ସେ ଯୋତା ମରାମତି କରୁଥିଲା । ଗୀତ ଗାଉଥିଲା । ଲୋକେ ତାକୁ ଭଲ ପାଉଥିଲେ । ଥରେ ସେ ଗୁପ୍ତଧନ ରୁପା ସୁନା ପାଇଲା ।



ତାକୁ ଗୁପ୍ତ ଯାଗାରେ ଲୁଚାଇ ରଖିଲା । କିଏ ନେଇଯିବ ଭାବି ବହୁତ ଚିନ୍ତିତ ହେଲା । ସେ ଭାବିଲା ବାରି ବାରି ଗଲେ ଲୋକେ ଜାଣିବେ । ଏହିପରି ବହୁଦିନ ଧରି ମାନସିକ ଦୁଃଖ ଭୋଗିଲା । ତାକୁ ଧଇଁ ରୋଗ ହେଲା । ଗୀତ ଗାଇ ପାରିଲା ନାହିଁ । ଶେଷରେ ସେ ତାହାର ଗୁପ୍ତଧନ ସମୁଦ୍ରରେ ପକାଇ ଦେଲା । ପୁଣି ତାର ଆନନ୍ଦର ସୁଅ ମନରେ ଖେଳିଲା । ଆସମା ରୋଗ ତାର ଭଲ ହୋଇଗଲା ।

# ୪

ପ୍ରଫେସର ଦାସ ଓ ପ୍ରଫେସର ଚନ୍ଦ୍ର ଦୁଇ ବନ୍ଧୁ । ପ୍ରଫେସର ଦାସ ଗାଡ଼ି ଚଳାଉଥାଆନ୍ତି ଖୁବ୍ ବେଗରେ । ଏ ତାଙ୍କ ସ୍ୱଭାବ । କଟକ ସହର । ଷଣ୍ଢ ବୁଲନ୍ତି । ଆଗରେ ତାକୁ ଦେଖି, ରାସ୍ତା ନ ଛାଡ଼ିବାରୁ ନବାବ ଭଳି ରାସ୍ତା ମଝିରେ ଚାଲୁଥିବାରୁ, ସେ ହଠାତ୍ ଜୋରରେ ବ୍ରେକ୍ ଦେଇ କହିଲେ "ବ୍ଲଡ଼ି ଫୁଲ, ଗେଟ ଆଉ ଏ ନର୍ବୋଧ



ବୋକା ରାସ୍ତା ଛାଡ଼ ।" ସେ ମହାଦେବଙ୍କ ଷଣ୍ଢ, ପ୍ରଫେସର ଦାସଙ୍କ କଥା ମାନିବ କିପରି ? ପ୍ରଫେସର ଚନ୍ଦ୍ର ପଚାରିଲେ "ବନ୍ଧୁ, ଏପରି ଇଂରାଜୀରେ କହୁଛ । ଷଣ୍ଢ କ'ଣ ବୁଝି ପାରୁଛି । ସେ ତୁରନ୍ତ ଉତ୍ତର ଦେଲେ" । "ସେ ବୁଡ଼୍ବୋକ ବୁଝୁ ନବୁଝୁ, ଆମ ମନ ଶାନ୍ତ ।"

ସେ ଭଲ ସର୍ଜନ । ଭଲ ଅପରେସନ କରନ୍ତି । ଖୁବ୍ ଚଞ୍ଚଳ । ଅପରେସନ୍ ବେଳେ ସିଷ୍ଟର ଛୁରି, କଇଁଚି, ଦେବାରେ ଡ଼େରି ହେଲେ ଯାହା କିଛି ପାଖରେ ଥାଏ ଫୋପାଡ଼ି ଦଅନ୍ତି । ବେହେରାମାନେ କାମରେ ଡେରି କଲେ "ବ୍ଲଡ଼ିଫୁଲ୍" ବୋଲି କହନ୍ତି । ମାତ୍ର ତାଙ୍କ ହୃଦୟ ନିର୍ମଳ, ଉଚ୍ଚ ଦୟାଳୁ, କର୍ମଠ । ସେଥିପାଇଁ କେହି କିଛି ମନେକରନ୍ତି ନାହିଁ । ସେ ବଡ଼ ଭାବପ୍ରବଣ । ମାନସିକ ଚାପ ବେଶୀ । ମଝିରେ ମଝିରେ ବିସ୍କୁଟ୍ ଚକୋଲେଟ ଖାଇବେ । କଣ ଔଷଧ ଖାଇବେ । ଯାଙ୍ଗ ପ୍ରଫେସର ଜାଣନ୍ତି ତାଙ୍କର ପେଟ ରୋଗ । ପେଟ ମାରେ ଖାଇବାର ତିନିଘଣ୍ଟା ପରେ । ଅଖିଆ ପେଟ ହେଲେ ବେଶି । ଥରେ ଥରେ ବାନ୍ତି କରନ୍ତି । ସିଗାରେଟ ଛାଡ଼ିଲେ, ମାଦକ ଦ୍ରବ୍ୟ ଛାଡ଼ିଲେ । ମାନସିକ ଶାନ୍ତିପାଇଁ ଛୁଟି ନେଇ ବୁଲନ୍ତି । ଅଳ୍ପ ମାତ୍ରାରେ ବେଶିଥର ଖାଆନ୍ତି । କ୍ଷେଲୁସିଲ କଲରେ ଯାକିକରି ଲଜେନ୍ସ ପରି ମଝିରେ ମଝିରେ ଖାଆନ୍ତି ।

ଶାନ୍ତିରେ, ଆନନ୍ଦରେ ମନ ଆକାଶ ଛୁଇଁଲେ ଏପରି ରୋଗ ଆସେନା ।

୫

ଦେବେନ୍ଦ୍ର, ଯୁବକ ହାକିମ ।

ଦେହର ରଙ୍ଗ ଗୋରା । କାନ ଦୁଇଟା ବଡ । ବେଶ ଉଚ୍ଚ । ରାଜା ପୁଅପରି ଚେହେରା । ତା କଥା ଭାରି ମଧୁରିଆ ।

ଭିତରେ କିନ୍ତୁ ଦେବେନ୍ଦ୍ର ବଡ଼ ଚିନ୍ତାଶୀଳ । ସ୍ତ୍ରୀର ତାଡ଼ନା, ବଡ଼ ଚାକିରିର ଦାୟିତ୍ୱ । ପାହାଡ଼ ଉପରେ ବଡ଼ ବଙ୍ଗଳା । କଲେକ୍ଟର ସାହେବ ସେ । ଲୋକଟି ସରଳ ମାତ୍ର ଅରଣା । ଅସିଷ୍ଟାଣ୍ଟମାନେ ବିଶ୍ୱସ୍ତ, ମାତ୍ର ଅପାରଗ । ଉପରିକର୍ତ୍ତା ପରିଦର୍ଶନ କଲାବେଳେ ନ୍ୟୁନମନୋବୃତ୍ତି ଅଣ୍ଟ ସଣ୍ଟ କହନ୍ତି । ହାକିମୀ ଦେଖାନ୍ତି । ଗଧିଆପରି ଖାଆନ୍ତି ଓ ପିଅନ୍ତି । ତା ସାଙ୍ଗକୁ ମଉଜମଜଲିସ ବି କରନ୍ତି । ଟିକିଏ ତ୍ରୁଟି ହେଲେ ନାଲି ଆଖି ବି ଦେଖାନ୍ତି । ମୋଟ ଉପରେ କହିବାକୁ ଗଲେ ମୂର୍ଖ ଓ ଅରଣା । କେହି କେହି କହନ୍ତି ହାକିମ ସିଗାରେଟ୍ ମଦ ପିଅନ୍ତି କିନ୍ତୁ ସେ ବଡ଼ ବିଚକ୍ଷଣ ।



ଦେଖୁ ଦେଖୁ ତାଙ୍କର ମୁଣ୍ଡ ବିଥେଇଲା, କଣ ହୋଇଛି ବୋଲି ଡାକ୍ତର ଡକାଇଲେ । ଡାକ୍ତର ଦେଖିକରି କହିଲେ

ଆଜ୍ଞା ବ୍ଲଡ଼ପ୍ରେସର ବଢ଼ିଛି । ଔଷଧ ଖାଆନ୍ତୁ । ବଟିକା ଦେଲେ । ମଝିରେ ମଝିରେ ମନେ ପଡ଼ିଗଲେ ଖାଆନ୍ତି । ନହେଲେ ନାହିଁ । ଦେଖୁ ଦେଖୁ ଦିନେ ବ୍ଲଡପ୍ରେସର ପଡ଼ି ତାଙ୍କୁ ବେହୋସ କରିଦେଲା । ବହୁଦିନ ଚିକିତ୍ସା ପରେ ହୋସ ଆସିଲା । ସେ ମରୁ ମରୁ ବଞ୍ଚିଲେ । ମାତ୍ର ସେତେବେଳକୁ ଗୋଟିଏ ପାଖ ଅଙ୍ଗପାତ୍, ଆଉ କଥା କହିବାକୁ ଅକ୍ଷମ । ଚିନ୍ତା ଓ ରକ୍ତଚାପ ମଣିଷର ଏହିପରି ଅନିଷ୍ଟ କରିଥାଏ, ଅଜଣା ଅଶୁଣା ଭାବରେ ।

୬

ପ୍ରଥମ ସୂର୍ଯ୍ୟର ଗୋଲାପି ଛଟା, ଝରକା ବାଟେ ପଡ଼ୁଛି ରାମଚନ୍ଦ୍ରଙ୍କର ବିଛଣା ଉପରେ । ହଠାତ୍ ସେ ବାନ୍ତିକଲେ ରକ୍ତ । ତାଙ୍କ ସ୍ତ୍ରୀ ଝରଣା ଦୁଧ ଗରମ କରି ଥଣ୍ଡା କରୁଥିଲେ ତାଙ୍କ ପାଇଁ । ଛୋଟ ଚାକରର ଭୁଲ୍ ଠିକ୍ ପାଇଁ ଗତ ରାତିରେ ସେ ଦୁହଁଙ୍କ ଭିତରେ ବହୁତ କଜିଆ । ଏହିପରି ମଝିରେ ମଝିରେ ଦୁହିଁଙ୍କ ଭିତରେ କଜିଆ ହୁଏ । ଝରଣା ଖୁବ ବିଶ୍ୱାସୀ ବୋଲି ବାହାରକୁ ମନେହୁଏ । ସେ ସରଳ ନୁହେଁ । ଅହଂକାର ଖୁବ ବେଶୀ । ରାମଚନ୍ଦ୍ର କାହାକୁ କିଛି କହନ୍ତି ନାହିଁ । ତାଙ୍କ ପେଟରେ ଦରଜ ହୁଏ । ଥରେ ଥରେ ସେ ବାନ୍ତି କରନ୍ତି । ଡାକ୍ତରଙ୍କୁ ପଚାରିବାରୁ ସେ କହିଲେ ଏହା ପେଟ 'ଘା' । ଡାକ୍ତର ରୋଟି, ଦୁଗ୍ଧ, ସିଝା ଖାଦ୍ୟ ଏପରିକି ମାଛ ମାଂସ ଖାଇବାକୁ କହିଲେ ।

ସକାଳୁ ପୁଅ, ଝିଅଙ୍କୁ ରାମଚନ୍ଦ୍ର ଉଠାନ୍ତି । ଟିକିଏ ଆନନ୍ଦ ପାଆନ୍ତି । ଦିନେ ଦିନେ ରାତିରେ ତାଙ୍କୁ ନିଦ ହୁଏ ନାହିଁ । ସକାଳ ହେଲେବି ବିଛଣା ଉପରେ ପଡ଼ିଥାଆନ୍ତି । ସୂର୍ଯ୍ୟକିରଣ ଯେତେବେଳେ ତାଙ୍କ ବିଛଣା ଉପରେ ପଡ଼େ ସେ ଉଠି ପଡ଼ନ୍ତି ।

ବସନ୍ତ ଋତୁ । ଶାନ୍ତ ସନ୍ଧ୍ୟା । କାଠଯୋଡ଼ି କୂଳେ ମଣିଷର ଚିତା ହୁ, ହୁ, ଜଳୁଛି । ମା'ଙ୍କ ମନ୍ଦିରରେ ଘଣ୍ଟି ଓ ସଙ୍ଖ ବାଜୁଛି । ରାମଚନ୍ଦ୍ର ଟୁରୁରେ ବାହାରକୁ ଯାଇଥିଲେ କେତେଦିନ ହେଲା । ଫେରି କାଠଯୋଡ଼ି କୂଳରେ ଏକୁଟିଆ ବସିଛନ୍ତି । ପାହାଡ଼କୁ ଅନାଇଛନ୍ତି । ଫେରି ମନ୍ଦିର ଆଡ଼େ ଅନାଇଲେ । ଦେଖିଲେ ତାଙ୍କ ସ୍ତ୍ରୀ ତାଙ୍କର ଜଣେ ବନ୍ଧୁଙ୍କ ସହିତ ବୁଲୁଚନ୍ତି । ତାଙ୍କ ମୁଣ୍ଡ କ'ଣ କେମିତି ହୋଇଗଲା । ସେ ଉଠି ଆସିଲେ । ମନ ଖରାପ ।

ସେଦିନ ରାତ୍ରିରେ ଶୋଇବାକୁ ଚେଷ୍ଟା କଲେ ସେ, କିନ୍ତୁ ନିଦ ହେଲା ନାହିଁ । ପାହାନ୍ତି ତାରା ଆକାଶେ ଉଙ୍କି ମାରିଲା । ପବନ ବହୁଥିଲା । ଏସବୁ ସତ୍ତ୍ୱେ ତାଙ୍କ ଆଖି ରଡ଼ ନିଆଁ ପରି ଦାଉ ଦାଉ ହୋଇ ଜଳୁଥିଲା । ରାଗରେ, ସ୍ତ୍ରୀଙ୍କ ବ୍ୟବହାରରେ ପୁଣି ଆଉଥରେ ରକ୍ତ ବାନ୍ତି, ସେ ଆଜି ଡ଼ାକ୍ତର ଖାନାରେ ତାଙ୍କୁ ରକ୍ତ ଦିଆଯାଉଛି ।




ଲକ୍ଷ୍ମୀ ଥିଲା ଯୁବତୀ ସୁନ୍ଦରୀ । ତା ଦେହ ବେଶ୍ ଟାଣ । ମୁଣ୍ଡର ବାଳ ଖୁବ୍ ବେଶୀ । କଳା କଳା ଆଖି, ସେ କ୍ଷେତରେ

କାମ କରେ ଦିନ ରାତି । କ୍ଷେତ ତା'ର ହସେ । ଚଷା ଘର ଝିଅ ସେ । ତା'ର ଘର ଶସ୍ୟରେ ଭରପୁର । ତା ସ୍ୱାମୀ ଖୁବ୍ କାମିକା ଲୋକ । ତା'ର ବାଡ଼ି ପଛରେ ଛୋଟ ପୋଖରୀଟିଏ । ସବୁଦିନେ ଜଳ ଭରପୁର । ଏହି ଜଳରେ ତା'ର ବଗିଚା ଫଳ



ଫୁଲରେ ଭରିଯାଏ । ତା' ଘର ଆଗରେ ମନ୍ଦିରଟିଏ । ତା ପାଖକୁ ବିଭିନ୍ନ ବୃକ୍ଷ । ପରିସର ଖୁବ୍ ସୁନ୍ଦର । ଲକ୍ଷ୍ମୀ ଓ ତା'ର ସ୍ୱାମୀ ସନ୍ଧ୍ୟାରେ କାମସାରି ଗୀତ ଗାଆନ୍ତି । ସେମାନେ ଆନନ୍ଦରେ ଥାଆନ୍ତି । ଏହିପରି କିଛି ଦିନ କଟିଲ୍ । ଲକ୍ଷ୍ମୀର ପୁଅଟିଏ ହେଲ୍ । ପୁଅକୁ ଛଅ ମାସ ହୋଇଛିକି ନାହିଁ, ତା'ର ବାପକୁ ମୁଣ୍ଡଜର ଓ ଝାଡ଼ା ହେଲ୍ । ଦୁଇଦିନ ପରେ ସେ ବେହୋସ ହୋଇଗଲ୍ । ଶେଷରେ ସେ ମରିଗଲ୍, ମସ୍ତିଷ୍କ ମେଲେରିଆରେ ।

ଲକ୍ଷ୍ମୀ ଏକୁଟିଆ । ତା' ସହିତ ତା' କୁନି ପୁଅ । ପଡ଼ୋଶୀ ବୋଲି ଜଣେ ଦୁଇଜଣ । ଅନ୍ୟ ଗାଁ ଟୋକାଏ ତା ସହିତ ଦୁଷ୍ଟାମି କରିବାକୁ ଚାହିଁଲେ । ରାତି ଅଧରେ ତା ଘରେ ପଶିଲେ । ଶେଷରେ ତା ଘରେ ନିଆଁ ଲଗାଇଦେଇ ପଳାଇଲେ ।

ପିଲାଟିକୁ ପଡ଼ୋଶୀ ଘରେ ଦେଇ ଲକ୍ଷ୍ମୀ ପଳାଇ ଆସିଲା କଟକ ସହରକୁ । ସେ ଚାକିରି ଖୋଜିଲା । ବୁଲି ବୁଲି ଶେଷରେ ସ୍କୁଲ ଇନସ୍‌ପେକଟରଙ୍କ ଘରେ ପହଞ୍ଚିଲା । ସେ ଦୟାକରି ରଖିଲେ । ତା' ପରେ ସେ ତା ସ୍ୱାମୀ ଘରର ଜମି, ପୁଅ ଏସବୁ ସେ ଭାବିବାକୁ ଲାଗିଲା । ଅନେକ ଚିନ୍ତା । ଏହା ଭିତରେ ସେ ଇନସପେକ୍‌ଟର କହିଲେ, ଘରେ ସବୁ କାମ ତ କରୁଛୁ ଏବେ ତୁ ଖ୍ରୀଷ୍ଟିଆନ୍ ହୋଇଯା । ତାହାହିଁ ହେଲା ।

ଏ ସବୁ କଥା ତାକୁ ବିଚଳିତ କରୁଥିଲା । ବହୁତ କାମ, ଅଳ୍ପ ବିଶ୍ରାମ ଏକୁଟିଆଭାବ ତାକୁ ଅଥୟ କଲା । ସେ ସବୁବେଳେ ଏକୁଟିଆ ଯାଗାରେ ବସେ, ସେ କେବେ ଖୁସି ହୁଏନାହିଁ । ଶୁଣିଲା ତା' ପୁଅଟି ପୁଣି ମରିଯାଇଛି । ସେ କାନ୍ଦିଲା ବହୁତ । ହଠାତ୍ ତା ଦେହ ଓ ମୁଣ୍ଡ କୁଣ୍ଡାଇ ହେଲା । ଚକା ଚକା ହୋଇ ଫଳ ଗଲା, କାତ ବାହାରିଲା । ଇନସ୍‌ପେକଟର ତାକୁ ଡ଼ାକ୍ତରଖାନାକୁ ପଠାଇଲେ । ସେଠାରେ ତା' ରୋଗକୁ କୁଷ୍ଠ ରୋଗ ବୋଲି ଭାବିଲେ । ସେ ବଡ ଡାକ୍ତରଖାନାକୁ ଗଲା । ସବୁ କଥା ଶୁଣି ପ୍ରଫେସର ତାକୁ ଡ଼ାକ୍ତରଖାନାରେ ରଖାଇ ଦେଲେ । ତା ରୋଗ ଥିଲା

ଶୋଉଆସିଦ୍ । ତା'ର ବ୍ୟସ୍ତତା, ଦୁଃଖ, କଷ୍ଟ ତା'ର ନିର୍ଶ୍ରୟ ଭାବ ଏହ ରୋଗ ଆଣିଲା । ଦୁଇ ତିନ ମାସ ରଖି ତାକୁ ବିଦାୟ ଦେଲେ । ସେ ଆସି କହିଲା, ମୋତେ ଗୋଟିଏ ଚାକରୀ ଦିଅ ।

ପ୍ରଫେସର କିଛି ନ କହି ଜଣେ ସ୍ତ୍ରୀ ଲୋକ ନିକଟକୁ ପଠାଇଲେ । ସେ ଥିଲେ କନିକା କଟେଜରେ । ତାଙ୍କୁ ସେବା କଲା । ଥରେ ପ୍ରଫେସର ଫେରିଲା ବେଳକୁ ସମସ୍ତଙ୍କୁ ଗାଡ଼ିରେ ବସାଇ ଆଣିଲେ । ଲକ୍ଷ୍ମୀ ପରେ ଜାଣିଲା ଯେ ସେ ସ୍ତ୍ରୀ ଲୋକ ପ୍ରଫେସରଙ୍କ ସ୍ତ୍ରୀ । ସେ ଲକ୍ଷ୍ମୀକୁ କିରସ୍ତାନ ଜାଣି ଟିକେ ଘୃଣା ଚକ୍ଷୁରେ ଦେଖିଲେ । କିନ୍ତୁ ପ୍ରଫେସର ତାଙ୍କୁ ସବୁ ବୁଝାଇ ଦେଲେ । ଏହା ପରେ ଲକ୍ଷ୍ମୀ ତା ନିଜ ଗୁଣରେ ସମସ୍ତଙ୍କୁ ସନ୍ତୁଷ୍ଟ କଲା । ଶୋଉଆସିସ୍ ରୋଗ ତା' ଦେହରେ ଲୁଚିଥାଏ । ଦୁଃଖ କଥା ମନେ ପଡ଼ିଲେ ବାହାରି ପଡ଼େ ।



ବହୁତ ଯୁବକ ଯୁବତୀ କଲେଜ ହତାରେ । ସେମାନଙ୍କର ଶକ୍ତି ଖୁବ୍ ବେଶୀ । ମୁଖ୍ୟ ଅତିଥି ଗୋଲଖ ଚନ୍ଦ୍ର ଆସି ନାହାନ୍ତି । ଟିକିଏ ଡେ଼ରି ଅଛି ଆସିବାକୁ, ସେ ଶେଷରେ ଆସିଲେ । ସେ ଚକିତ ଥିଲାପରି ଦେଖାଗଲେ ଏଣେତେଣେ ଅନାଇଲେ । ଭାଷଣ ଦେଲାବେଳେ ତାଙ୍କ ଦେହ କୁଣ୍ଡାଇ ହେଲା । ସାରା ଦେହ ତାଙ୍କର କୁଣ୍ଡାଇ ହେବାକୁ ଲାଗିଲା । ସେ କୌଣସିମତେ ଭାଷଣ ଶେଷ କରି ବିଶେଷଜ୍ଞଙ୍କ ପାଖକୁ

ଗଲେ । ତାଙ୍କର ରକ୍ତ, ଝାଡ଼ା ପରୀକ୍ଷା ହେଲା । ଫ୍ୟାଲେରିଆ ନାହିଁ । ପେଟରେ କିଆ ନାହିଁ । କୌଣସି ଅଖାଦ୍ୟ ଖାଇ ନାହାନ୍ତି । କୌଣସି ଔଷଧ ଖାଇ ନାହାନ୍ତି । ବିଶେଷଜ୍ଞଙ୍କ ମତ ହେଲା ଯେ ସେ ବେଶୀ ଚିନ୍ତା କରୁଥିବାରୁ ଏପରି କୁଣ୍ଡାଇ ହେବା ରୋଗ ହେଉଛି । ତାଙ୍କୁ ଔଷଧ ଓ ବିଶ୍ରାମ ଦିଆଗଲା । ଏହାପରେ ସେ ଭଲ ହେଲେ ।

## ୯

ନଦୀ ସେପାରିରେ ନୀଳ ପାହାଡ଼ । ସୂର୍ଯ୍ୟ କିରଣ ତାଙ୍କ ବାରଣ୍ଡାରେ ପଡ଼ୁଛି । ପବନ ଜୋରରେ ବହୁଛି । ଦଳ ଦଳ ପକ୍ଷୀ ଶବ୍ଦ କରି ଫେରୁଛନ୍ତି । ଶ୍ରୀ ଜୈନଙ୍କ ନଜର ଏ ସବୁଥିରେ ନାହିଁ । ବାତଉଇ କଣ୍ଢେଇ ହେଉଛନ୍ତି । ଏକ ଫାଳକା ମୁଣ୍ଡ ବିନ୍ଧା । ତା ସାଙ୍ଗକୁ ଥରେ ଦୁଇଥର ବାନ୍ତି । ବହୁତ ଡାକ୍ତରମାନଙ୍କୁ ସେ ଦେଖାଉଛନ୍ତି । କିଛି ଲାଭ ହୋଇ ନାହିଁ । ଆଖି, କାନ, ନାକ, ରକ୍ତ ସବୁ ପରୀକ୍ଷା ହୋଇଛି । ଶେଷରେ ଷ୍ଟେମଟିଲ୍ ଔଷଧ ଖାଇବାରୁ ରୋଗ ଭଲ ହେଲା । ଡାକ୍ତର କହିଲେ ଏହା ମିଗ୍ରେନ୍ ରୋଗ । ମାନସିକ ଚିନ୍ତା ଚାପରୁ ହେଉଛି ।

## ୧୦

ଚହା ଦୋକାନରେ ଭାରି ଭିଡ଼ । ଅଣ୍ଡା ଖାଇବା ପାଇଁ କୁକୁର ତିନ ଚାରିଟା କାମୁଡ଼ା କାମୁଡ଼ି । ତାଭିତରେ ଗୋଟେ ପିଲା । ସେ କିଛି ପାଇଲା ନାହିଁ । ସେ ଆସିଲା ବାବୁ-ମାନେ ବସିଥିବା ସରୁଆ ବେଞ୍ଚ ପାଖକୁ । ମାଗିଲା ପଇସା ।

କ'ଣ ଗୁଣ୍ଣୁ ଗୁଣ୍ଣୁ ହେଲା । ତାଙ୍କୁ ଦେଖି କୁକୁରମାନେ ଭୁକଲେ । ଭୟରେ ସେ କାନ୍ଦିଲା ।

ଶିବନାରାୟଣ ବାବୁ ତାକୁ ୧୦ ପଇସି ଦେଲେ । ସେତକରେ ସେ ଖୁସି ହୋଇ ହସିଲ । ଶିବନାରାୟଣ ବାବୁ ତା' ପିଠିକୁ ଦେଖି ପଚାରିଲେ 'ତୋ ପିଠି ଏମିତ ପୋଡ଼ିଗଲା କିପରି ?'

ପିଲାଟି କଇଁ କଇଁ ହୋଇ କାନ୍ଦିଲା । ପୁଣି କ'ଣ ନକେ ନକେ କହିବାକୁ ଲାଗିଲା । ଶିବନାରାରଣ ଭାବିଲେ ସେ ନିଶ୍ଚୟ ପାଗଳ । ଏହାପରି ତ ସେଦନ ଜଣେ ସୁନ୍ଦରୀ ସ୍ତ୍ରୀ, କେନ୍ଦ୍ରାପଡା ଡ଼ାକ୍ତରଖାନାରେ ଡାକ୍ତରଆଣୀ ଥିଲେ । ଜଣେ ଓକିଲ ତା' ପିଛା କରୁଥିଲା । ଦେଖୁ ଦେଖୁ ସେ ପାଗଳୀ ହେଲା । ଦାଣ୍ଡର ଭିକାରୁଣୀ ହେଲା । ଦାଣ୍ଡରେ ବୁଲୁଥିବା ବେଳେ ଲଫୁଙ୍ଗା ପିଲାଏ ତାକୁ ଗୋଡ଼ାନ୍ତି । ସେ ବହୁତ କାନ୍ଦେ ।

ଦୁଃଖ, ଯନ୍ତ୍ରଣା, ମାଡ଼, ଗାଳି, କ୍ଷୁଧା ଏପରି କରିଛି ସେ ପିଲାକୁ, କ'ଣ କଲେ ପିଲାଟି ଭଲ ହେବ । ଡ଼ାକ୍ତରଖାନାରେ ତ ଏହାକୁ ରଖିହେବ ନାହିଁ । କେହିତ ଘରେ ଚାକର କରି ରଖିବେ ନାହିଁ । ଏ ପାଗଳ ପିଲା ପାଇଁ କ'ଣ କରାଯାଇ ପାରିବ ? ଏହାର ତ କେହି ନାହିଁ । ଏହାକୁ କ'ଣ ପାଗଳ-ଖାନାରେ ଭର୍ତ୍ତି କରାଯାଇ ପାରିବ ? ଡାକ୍ତର ବିଶେଷଜ୍ଞ ଡାକ୍ତରଖାନାରେ ରଖିବେ ନାହିଁ । ସମସ୍ତେ ତ ଟଙ୍କା

ରହିବେ । କ'ଣ କରାଯିବ ? ଏ ବର୍ଦ୍ଧିତ ଶିଶୁପାଇଁ ତ ସ୍କୁଲ ନାହିଁ । ରହିବା ପାଇଁ ଯାଗାନାହିଁ । ଭଲ ହେବ କପରି ? ଏହି ଦାୟିତ୍ୱ କାହାର ? ସାମଜିକ ସଂସ୍ଥାର ନା ସରକାରଙ୍କର ?

୨୨

୧୯୬୭ ମସିହା । ଚାରଲସ୍ ହୁଇଟ୍‌ମାନ ଜଣେ କଲେଜ ଛାତ୍ର । ପିଲାଦିନେ ସେ ଖୁବ୍ ଭଲଥିଲା । ତା'ର ବାପା ଭାରି ରାଗି ଲୋକ । ସେ ତାଙ୍କ ସ୍ତ୍ରୀଙ୍କଠାରୁ ଅଲଗା ହୋଇଗଲେ । ଏହା ଦ୍ୱାରା ହୁଇଟମାନ ବିଚଳିତ ହେଲା । ସେ ତାର ବାପାଙ୍କୁ ଏପରି କର୍ମ ପାଇଁ ଘୃଣା କଲା । ପରେ ହୁଇଟମାନର ସମସ୍ତଙ୍କୁ ମାରିଦେବା ପାଇଁ ଇଛାହେଲା । ସେ ମନସ୍ତତ୍ତ୍ୱବିତଙ୍କୁ ଦେଖାକଲା । ତାଙ୍କ ସହିତ ସେ ନିଜର ଏହି ପ୍ରକାର ପାଗଲାମୀ ମନୋଭାବ କଥା ଆଲୋଚନା କଲା । ସେ ତାଙ୍କୁ କହିଲା ଯେ ଟେକସାସ ବିଶ୍ୱବିଦ୍ୟାଳୟର ଉପରକୁ ଯାଇ ସମସ୍ତଙ୍କୁ ଗୁଳି ମାରିବାକୁ ତାର ଇଛା ହେଉଛି ।

ମନସ୍ତତ୍ତ୍ୱବିତ୍ କ'ଣ କଲେ କେଜାଣି, ସେ ୧୬ଜଣଙ୍କୁ ଗୁଳି କରି ମାରି ପକାଇଲା, ତାର ସ୍ତ୍ରୀ, ତାର ମା'କୁ ମଧ୍ୟ । ପ୍ରାୟ ୩୦ ଜଣଙ୍କୁ ଜଖମ କଲା । ଶେଷରେ ପୁଲିସର ଗୁଳିରେ ସେ ମଲା । ମଲାପରେ ତାର ମୃତ ଦେହକୁ ପରୀକ୍ଷା କରାଗଲା । ଦେଖାଗଲା ଯେ ତାର ମୁଣ୍ଡରେ ଟିଉମର ହୋଇଥିଲା । ଏହି ରୋଗଟି ଥିଲା ତାର ଏହି ପ୍ରକାର ପାଗଲାମୀ ପାଇଁ ଦାୟୀ ।

୧୬

୧୯୫୦ ମସିହା । ବଲ୍‌କୁନ୍ ପାଞ୍ଚବର୍ଷ ବେଳେ ତା ମା'କୁ ହରାଇଲା । ପିତା ତାକୁ ଓ ଅନ୍ୟାନ୍ୟ ପୁଅଝିଅଙ୍କୁ କୋଇଲା ଖଣି ଭିତରେ ଛାଡ଼ଦେଲେ । କ୍ରମେ ବଲ୍‌ର ଡହାଣ ଆଖିର ପତା ନଷ୍ଟ ହେଲା । କେତେକ ଦୟାଳୁ ଲୋକ ତାର ଭାଇ ଭଉଣୀକୁ ପୋଷିବା ପାଇଁ ନେଲେ । ବଲ ଦୁଷ୍ଟ ଥିଲା । ତେଣୁ ତାକୁ କେହ ପାଳିବା ପାଇଁ ନେଲେ ନାହିଁ ।



ଗାଁର ଅଭିଭାବକ ତା ଉପରେ କଡ଼ା ନଜର ରଖିଲେ । ତାକୁ ଯେତେବେଳେ ୧୨ ବର୍ଷ, ସେ ସ୍କୁଲ ଛାଡ଼ିଲା । ରିଫର-ମେଟରୀ ସ୍କୁଲକୁ ଯିବା-ପାଇଁ ସେ ନଜେ କହିଲା । ପ୍ରାୟ ବନ୍ଦୀଘରେ ସେ ସାରା ଜୀବନ କଟାଇଲା । ପିଲାଦିନୁ ତାର ବାମ ହାତ ଆଙ୍ଗୁଠିରେ ଶତା ଲେଖିଥିଲା ଯେ "କଠୋର ଭାଗ୍ୟ ।"

ପ୍ରଥମଥର ବନ୍ଦିଘରୁ ଆସି ସେ ଅନ୍ୟର ବାସନ ଧୋଇଲା । ଗୋଟିଏ ବନ୍ଧୁକ କିଣିଲା । ଟେକ୍ସାର ଜଣେ ମେକାନିକ୍ ସହିତ କଜିଆ କଲା । ତାକୁ ବାନ୍ଧି ପକାଇ ସେ ତାର ଗାଡ଼ିନେଇ ଚାଲିଗଲା । ଅନେକ ବାଟ ଗଲାପରେ ସେ ଗାଡ଼ି ଭାଙ୍ଗି ଗଲା । ସେଥିରେ ନେଇ ଯାଉଥିବା ଚାଷୀ, ତା ସ୍ତ୍ରୀ ଓ ପିଲା ତିନି ଜଣଙ୍କୁ ହତ୍ୟାକରି ସେ ଫୋପାଡ଼ି ଦେଲା । ଏହିପରି ଗାଡ଼ି ଅଟକାଇ ଲୋକମାନଙ୍କୁ ଗୁଳିକରି ଗାଡ଼ିନେଇ ଚଳାଇଯାଏ । କେତେବେଳେ ମଧ୍ୟ ଲୋକ ମାନଙ୍କୁ ଗଛରେ ଅନ୍ୟସ୍ଥାନରେ ବାନ୍ଧି ପକାଏ । ଏପରିକି ୧୪ ଜଣଙ୍କ ଭିତରୁ ୬ ଜଣଙ୍କୁ ସେ ହତ୍ୟାକଲା । ଏହିପରି ଟେକସାରେ ୨୭ ଜଣ ୧୦ ବର୍ଷର ପିଲାଙ୍କୁ ସେ ହତ୍ୟା କରିଥିଲା ।

ପିତାମାତାଙ୍କର ଦୁର୍ବ୍ୟବହାର, ସମାଜର ଘୃଣା ମନୋଭାବ ବଲକୁନ୍‌କୁ ଏହିପରି ହିଂସ୍ର ମନବୃତ୍ତିରେ ପରିଣତ କରିଥିଲା ।

୨ ୩

ସିରହାନ ବି ସର୍ହାନ ମନେମନେ ଭାବିଲା ଯେ ସେ ଜଣେ ଆରବବାସୀଙ୍କ ପରି ମଧ୍ୟ ଦେଶପ୍ରେମୀ । ଯେତେ-ବେଳେ ସେ ଶୁଣିଲା ଯେ ସିନେଟର ରବର୍ଟ ଏଫ୍ କେନେଡ଼ି ୫୦ଟି ଲଢ଼ୁଆ ଉଡାଜାହାଜ ଇସରାଏଲ୍‌କୁ ପଠାଉଛନ୍ତି, ସେ ବଡ଼ କୌଶଳରେ ଆମେରିକାର ରାଷ୍ଟ୍ରପତି କେନେଡ଼ିଙ୍କୁ ଗୁଳିକରି ହତ୍ୟା କଲା । ତାର ଆମନେସିଆ ରୋଗ ହଠାତ୍

ଏପରି ରୂପ ନେଲା । ପରେ କୋର୍ଟର ଆଦେଶରେ ଯେତେବେଳେ ତାକୁ ପରୀକ୍ଷା କରାଗଲା, ସେ ପ୍ରକୃତରେ କିଛି ଜାଣି ନଥିଲା । ତାକୁ ଯେତେବେଳେ ୧୯୪୮ ମସିହାରେ ଇସ୍ରାଏଲ୍ ଜେରୁଜେଲମରେ ବୋମା ପକାଇ ଧ୍ୱଂସ କରିବାର କଥା ପଚରାଗଲା, ସେତେବେଳେ ସିରହାନ ଅତି ଦୁଃଖରେ କାନ୍ଦିଲା । ଭୟରେ ଥରି ଉଠିଲା । ନିଜର ମନରେ ପ୍ରଭାବିତ ହୋଇ ସେ ହତ୍ୟାକଲା । ତାର ସେତେବେଳେ କିଛି ବିବେକ ନଥିଲା ସେ ନିଜର ପାଗଳାମୀରେ ଚାଳିତ ହୋଇ ଏହା କରିବ ବୋଲି ଠିକ୍ କରିଥିଲା । ୫ । ୬ । ୬୮ ତାରିଖ ଡ଼ାଇରୀରୁ ମିଳେ ଯେ ଜିଉମାନଙ୍କୁ ସାହାଯ୍ୟ କରିବାକୁ ଯାଉଥିବା ଉଡ଼ାଜାହାଜ କେନେଡ଼ିଙ୍କ ଦ୍ୱାରା ପଠାଯାଇଥିଲା । ସେଥିପାଇଁ ସେ କେନେଡ଼ିଙ୍କୁ ହତ୍ୟାକଲା ।

୨୪

୧୬ । ୧୧ । ୮୨ ତାରିଖ ଷ୍ଟେଟସମ୍ୟାନ ପ୍ରକାଶିତ ଖବର —ବହୁ ଦୁଃଖ ଦାୟକ । ୩୪ ବୟସ୍କ ଯୁବକ ବୃଷ ଓ୍ୱେଷ୍ଟ-ଭର୍ଜିନିଆର ଲୋକ । ସେ ୩୧ ଜଣକୁ ମାରିଥିଲା । ସେ ଏହା ପାପ ବୋଲି ମନେ କରି ପ୍ରାୟଶ୍ଚିତ କରିବାକୁ ଚାହିଁଲା । ସେଥିପାଇଁ ସେ ସ୍ୱୀକାର କଲା । ବୃଷ୍‌ର ସେମାନଙ୍କ ସହିତ ଯୌନ ସମ୍ପର୍କ ଥିଲା । ସେଥିରେ ସେ ବିରକ୍ତ ଓ ଅସନ୍ତୁଷ୍ଟ ହୋଇ ସେମାନଙ୍କୁ ହତ୍ୟାକଲା । ସେ ଇଲିନଏସ୍‌ର ଜେଲ୍‌ରେ

ରହିଲା । ଜଣେ ଜେଲରକୁ ବି ହତ୍ୟା କଲା । ହୋଟେଲରେ ଓ ବଣରେ ଥିଲାବେଳେ ସେ ନିଜର ଜାତୀୟ ଲୋକମାନଙ୍କୁ ହତ୍ୟା କରିଥିଲା । ଦୁଇଜଣ ପିଚ୍ଚରେ ସେ ଲେଖିଲା "ସମସ୍ତ ବିଦେଶ ଲୋକଙ୍କ ମରଣ ହେଉ" ସେ ସମସ୍ତ ଲୋକଙ୍କ ସହିତ ତାର ଯୌନ କ୍ରିୟା ଥିଲା । ପରେ ସେ ବ୍ୟସ୍ତ ଓ ବିରକ୍ତ ହୋଇ ସେମାନଙ୍କୁ ହତ୍ୟାକଲା ।

୧୫

୨୭ । ୩ । ୮୪ ଷ୍ଟେଟ୍ସମ୍ୟାନ୍ ଖବର କାଗଜ ସେଥିରେ ପ୍ରକାଶିତ ଯେ ୨୭ ବର୍ଷ ଯୁବକ ଗୁର୍ଦାସ କଲେଜର ଛାତ୍ରୀ ମିନତି ପାତ୍ରକୁ ଛୁରିଦ୍ୱାରା ହତ୍ୟାକଲେ । ଏହାର ପରେ ପରେ ସେ ପୋକମରା ଔଷଧ ଖାଇ ସେ ନିଜେ ମଲା । ପୁଲିସ କହେ ଏହା ହେଉଛି ବିଫଳ ପ୍ରେମର ପରିଣତି । ଏସବୁ ମନର ବିକୃତ ଅସ୍ୱାଭାବିକ ବ୍ୟବହାର ।

୧୬

ଆଦିବାସୀ ଅଞ୍ଚଳ । କୋରାପୁଟ ଜିଲ୍ଲା । ବାପ ଓ ଝିଅଟିଏ । ସମ୍ପତ୍ତି ଭିତରେ ଖାସୀଟିଏ । ଦିନେ ଝିଅ ଯାଇଛି ହାଟକୁ । ଏକ୍ସାଇଜ୍ ବିଭାଗର ସୁପରୀଟେଣ୍ଡେଣ୍ଟ ଗସ୍ତରେ ଆସିଲେ । ଡାକବଙ୍ଗଳାରେ ରହିଲେ । ତାଙ୍କୁ ଖୁସି କରିବାକୁ ଦୁଇଜଣ ଭେଣ୍ଡର ସେ ବୁଢ଼ା ଆଦିବାସୀ ଘରକୁ ଯାଇ ୧୦ ଟଙ୍କା ଦେଇ ଜବରଦସ୍ତ ସେହି ଖାସୀଟିକୁ

ନେଇ ଆସିଲେ । ବୁଢ଼ା ମନାକରିବାରୁ ତାକୁ ଦୁଇଧକା ଦେଇ ତଳେ ପୋପାଡ଼ି ଦେଲେ । ଛାଗକୁ ନେଇ ମାରି ମାଂସ



କରି ତାଙ୍କ ହାକିମକୁ ଦେଲେ । ଝିଅ ହାଟରୁ ଫେରି ଏସବୁ ଅବସ୍ଥା ଦେଖିଲା । ଅନେକ ଦିନ ଧରି ଖାଇଲା ନାହିଁ । ଶେଷରେ ଦୁର୍ବଳା ହୋଇଗଲା । ଶେଷରେ ତାର ମାନସିକ ରୋଗ ହେଲା ।

## ୨୭

ଦୁଃଖ, ଅଭାବ, କ୍ଷୁଧା, ମନର ପ୍ରତିକ୍ରିୟା, ଯବରଦସ୍ତି କାରବାର ମନୁଷ୍ୟକୁ ବିବ୍ରତ କରୁଛି । କନ୍ଦାଇ କନ୍ଦାଇ ମାରୁଛି । କେତେବେଳେ ରୋଗ କରୁଛି । ରୋଗ

ପୁଣି ତା ଜୀବନକୁ ଶେଷ କରୁଛି । ଦୁଃଖର ଅବସାନ ହେଉନାହିଁ ।

ଅର୍ଥର ଅଭାବ ଦୂରୀଭୂତ ହେଲେ, କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦି ପ୍ରବଳ ହୋଇ ପାରନ୍ତି । ଆମେରିକା ଦେଶ ବହୁତ ଉନ୍ନତଃ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏ ଦେଶର ଅପରାଧ ସଂଖ୍ୟା ପୃଥିବୀରେ ସବୁଠାରୁ ବେଶୀ । ପ୍ରତି ୩୦ ସେକେଣ୍ଡରେ ଗୋଟିଏ ଚୋରୀ ବା ଡକାୟତି, ପ୍ରତି ୩୦ ମିନିଟ୍‌ରେ ଗୋଟିଏ ହତ୍ୟା । ପ୍ରତି ୩୦ ମିନିଟରେ ରାସ୍ତା ଦୁର୍ଘଟଣାରେ ଗୋଟିଏ ଆକସ୍ମିକ ମୃତ୍ୟୁ ।

ଏ ବଡ଼ ଆଶ୍ଚର୍ଯ୍ୟର କଥା ଯେ ହତ୍ୟା ପାଇଁ ହତିଆର ଯେତେ ଇଚ୍ଛା ସେତେ ବଜାରରେ ମିଳେ ସେଥିପାଇଁ ଅନୁମତି ଲୋଡ଼ା ନାହିଁ ।

ଅର୍ଥର ଅଭାବ ଦୂରୀଭୂତ ହେଲେ କାମ, କ୍ରୋଧ ଆଦି ରିପୁ ପ୍ରବଳ ନ ହେଲେ । ପ୍ରେମର ଅଭାବ ନ ଆସିଲେ । ମନୁଷ୍ୟ ସମାଜରେ ଦେଶରେ, ବିଶ୍ୱରେ ଶାନ୍ତି ଆସିବ କିପରି ? ଆସିଲେ ସୃଷ୍ଟିରେ ଆସିବ, ମାନବ ସମାଜରେ ଆସିବ ମାନବିକତା । ସେତେବେଳେ ଅପକର୍ମର ବିଲୟ ଘଟିବ । ଶାସନର ଆବଶ୍ୟକତା ନଥିବ ।

× × ×

× × ×

ଦୁଃଖ ନଦ୍ଦ ଗଳି ଯିବ ଏ ଧରା ଭୂଇଁରୁ ।
ଘୃଣା ନଦ୍ଦ ଗ୍ଳିଯିବ ଛାଡ଼ିଣ ଧରାରୁ ।
ଦୁଃଖରେ ଫୁଟି ସତେ ପ୍ରତଟି ମଣିଷ ।
ଗଢ଼ି ତାକୁ ସୁନାସମ ଜୀବନ ପରଶ ।
ପ୍ରତ ଦୁଃଖ ଫୁଟି ଉଠି ସ୍ଥଳ ପଦ୍ମ ସମ ।
ସେଥିରୁ ସୁବାସ କେତେ ବାଣ୍ଟିବରେ ପ୍ରେମ ।

୨୮

ରାମ ୧୨ ବର୍ଷର ପିଲା । ତାର ବାପ ମା ତାକୁ ମାରନ୍ତି । ସ୍କୁଲରେ ସେ ଭଲ ପଢ଼େନା । ଶିକ୍ଷକ ମାରନ୍ତି । ଘରକୁ ଫେରି ଆସେ । ତା ବଡଭାଇ ତା ସହିତ କଳିଆ କରେ । ସେ ଅଥୟ । ରାତରେ ସେ ଲୁହା କଣ୍ଟାରେ ନିଜ ଦେହକୁ ଚିରି ପକାଏ । କେବେକେବେ ବର ଖିର ଆଣି ଦେହରେ ଲଗାଏ । ଘା ହୁଏ ଭିନ୍ନ ଭିନ୍ନ ପ୍ରକାରର । ବାପ ବ୍ୟସ୍ତ । ଦେଖାଗଲା ଯେ ତା ହାତ ଯେତେବାଟ ଯାଏ ସେଥିରେ ସେ ତାକୁ ତିଆରି କରେ । ପ୍ରାୟ ସମାନ ହୁଏ, ଦୁଇ ଗୋଡ଼ରେ, ଦୁଇ ହାତରେ । ଡ଼ାହାଣ ପାଖରେ କମ ଦେଖା-ଯାଏ । ଥରେ ସେ ଆସିଡ଼ ଯୋଗାଡ଼ କରି ଲଗାଇଲା । ସମସ୍ତେ ବ୍ୟସ୍ତ ହେଲେ । ସମସ୍ତଙ୍କ ଦୃଷ୍ଟି ତା'ରି ଆଡ଼େ । ତାର ବାପ ତାକୁ ଆଣି ସ୍ପେସାଲିଷ୍ଟଙ୍କୁ ଦେଖାଇଲା । ସହାନୁ-ଭୂତି ସହିତ ତାକୁ ପଚରିବାରେ କେତେକ କଥା ବାହାରିଲା । ଏହାକୁ ଡରମାଇଟିସ୍ ଆରଟି ଫାକ୍ଟା କୁହାଯାଏ । କୃତ୍ରିମ କୁଣ୍ଡିଆ କୁହାଯାଏ ।

ଥରେ ଜଣେ ବୟସ୍କା ବିଧବା ମା ଜଣେ ପେସ୍କିଂ ଗେଷ୍ଟ ରହିଲେ । ଦୁଇଜଣଯାକ ପାଖା ପାଖି ଘରେ ରୁହନ୍ତି । କିଛି ଦିନ ପରେ ସେ ବିଧବା ନିଙ୍ଗ କୁଣ୍ଡାଇ ହେଲା । ବିଶେଷଜ୍ଞଙ୍କ ନିକଟକୁ ସେ ଆସିଲେ । ପରୀକ୍ଷିଲେ, ସେ କହିଲେ କୌଣସି ରୋଗଚିହ୍ନ ନାହିଁ । ପଚାରିବାରେ ଜଣାଗଲା ଯେ ସେ ଭଦ୍ର-ଲୋକ ଯେତେଦିନ ହେଲା ଅତିଥି ଅଛନ୍ତି, ସେତେଦିନ ହେବ ଏହା ବାହାରିଛି । ମନ ଉପରେ ଚାପ ପଡ଼ିବାରୁ ହୋଇଛି । ନିଦ ଓ ଆଲର୍ଜିକ ଔଷଧ ନେବାରେ ଭଲ ହେଲେ ।

ଜଣେ ଅସିଷ୍ଟାଣ୍ଟ ପ୍ରଫେସର ସ୍ତ୍ରୀଙ୍କର ଧାରଣା ଯେ ତାଙ୍କୁ କୁଷ୍ଠରୋଗ ହୋଇଛି । ସେ ବି ଡାକ୍ତର । ଡ଼ିମୋନ-ଷ୍ଟ୍ରେଟରେ ଥିଲେ । ତାଙ୍କୁ ଲକ୍ଷ୍ୟକଲେ ଜଣାଯିବ ଯେ ସେ ତୁଳା ନେଇ ନିଜକୁ ନିଜେ ପରୀକ୍ଷା କରନ୍ତି । ତାଙ୍କ ସ୍ୱାମୀ ଓ ସେ ଦୁଇଜଣ ହେଉଛନ୍ତି ଚର୍ମରୋଗ ପ୍ରଫେସର ଛାତ୍ର ଓ ଛାତ୍ରୀ । ସେମାନେ ତାଙ୍କୁ ଅନୁରୋଧ କଲେ ଟିକେ ଦେଖିବା ପାଇଁ । ସେ ବଡ଼ ସହାନୁଭୂତିର ସହିତ ଦେଖିଲେ । କୌଣସି ଲକ୍ଷଣ ପାଇଲେ ନାହିଁ । ସେ ରୋଗକାହିଁ ବୋଲି ମତ ଦେଲେ । ସବୁ ଭଲ । ମାତ୍ର ଡ଼ାକ୍ତରାଣୀଙ୍କ ମନରୁ ଏକଥା ଯାଉନାହିଁ । ସେ ଆସ୍ତେ ଆସ୍ତେ ତାଙ୍କ ଦୁଇ ପିଲାଠାରୁ ଦୂରରେ ରହିଲେ । ପୁଣି ସ୍ୱାମୀଠାରୁ ଦୂରେଇଲେ ।

ଭାରତ ବର୍ଷ ସ୍ୱାଧୀନତା ପାଇଲାଣି ଗତ ୪୩ ବର୍ଷ ହେବ । ଭାକ୍ରା, ତୁଙ୍ଗଭଦ୍ରା, ହିରାକୁଦ, ଦୁର୍ଗାପୁର ଇତ୍ୟାଦି

କଳକାରଖାନା ପୁରପଲ୍ଲୀରେ ସର୍ବୋଦୟ । ଦରିଦ୍ର କୁଟିରରେ ମଧ୍ୟ ସ୍ୱଚ୍ଛଳ ଅବସ୍ଥା । ତଥାପି ଯୋଜନା ଆଗଉଛି । ତଥାପି ଦୁଃଖ ସରି ନାହିଁ ଜନତା ପୁରା ଖାଇନାହିଁ । ପର ନୀତି ବିଜ୍ଞାନ ଆଗେଇନାହିଁ । ପ୍ରତି ସ୍ତରରେ ଦୁର୍ନୀତି । ଏ ସବୁ ସତ୍ତ୍ୱେ ଏକ ଶ୍ରେଣୀ ଅଛି । ଯେଉଁ ମାନେକି ଦୁସ୍ଥ, ଦଳିତ, ଅଭୁକ୍ତ ତାଙ୍କ କଥା ଆମକୁ ଚିନ୍ତା କରିବାକୁ ପଡ଼େ । ଭାଗ୍ୟ-ହୀନ ହେଲେ ଅନ୍ଧ, କାଲ, କେଙ୍ଗା, ପକ୍ଷାଘାତ, ମସ୍ତିଷ୍କ ବିକୃତ । ଯାହା କରିଛି ତାଙ୍କୁ ଅକର୍ମନ୍ୟ । ଭାରତରେ ଅନ୍ଧଙ୍କ ସଂଖ୍ୟା କୋଡ଼ିଏ ଲକ୍ଷ, କୁଷ୍ଠରୋଗୀ ପ୍ରାୟ ଅଧକୋଟି, କାଲ କେଙ୍ଗା, ଛୋଟା ସଂଖ୍ୟା ଅଗଣିତ । ସେହିପରି ଉନ୍ମାଦ, ଅଙ୍ଗପାରି, ପକ୍ଷାଘାତ ଗଣ୍ଠିବାତ ରୋଗୀ ସେମାନଙ୍କର ସଂଖ୍ୟା ବଢ଼ିଛି । ସେମାନଙ୍କ ପାଇଁ ଦେଶ ବହୁତ ଖର୍ଚ୍ଚ କରିବ, ତେବେ ତାଙ୍କ ଅବସ୍ଥା ସୁଧୁରିବ । କୁଷ୍ଠ, ଯକ୍ଷ୍ମା, ଦେହ ଉପଦଂଶ ଓ ସଂକ୍ରାମକ ଚକ୍ଷୁରୋଗ ପାଇଁ କଠୋର ବ୍ୟବସ୍ଥା ହେବା ଉଚିତ୍ । ସେମାନେ ସମାଜରୁ ଏକରକମ ବିଚ୍ଛିନ୍ନ । ସେମାନଙ୍କ ଥଇଥାନ ଏବଂ ଚିକିତ୍ସା ଅତ୍ୟାବଶ୍ୟକ । ତାଙ୍କର ସାମର୍ଥ୍ୟଅନୁଯାଇ ବୈସୟିକ ଶିକ୍ଷା ଦିଆଯାଇ ଉଚିତ ହସ୍ତଶିଳ୍ପ ଅନ୍ୟାନ୍ୟ କୁଟିର ଶିଳ୍ପ ଦ୍ୱାରା ସେମାନେ ବଞ୍ଚି ପାରିବେ । ସେମାନେ ଆତ୍ମନିର୍ଭରଶୀଳ ହେବେ । ତାଙ୍କର ଆତ୍ମ ମର୍ଯ୍ୟଦା ଆତ୍ମ ସମ୍ମାନ ବଢ଼ିବ । ଏ ସାମାଜିକ ସମସ୍ୟାର ସମାଧାନ ହୋଇପାରିବ । ଏ ଲୋକମାନେ ଅସମର୍ଥ ହେଲେ ବି କିଛି କିଛି ସାମର୍ଥ୍ୟ ଅଛି । ସେ ସବୁକୁ ବ୍ୟବହାର କରି

ସେମାନଙ୍କୁ ଉଦ୍ଧାର କରିବାକୁ ହେବ । ସେମାନଙ୍କୁ ହସ୍ତ-ଶିଳ୍ପରେ ବ୍ୟବହାର କଲେ ସେମାନଙ୍କ ଅବସ୍ଥା ସୁଧୁରୀ ଯିବ । ସେମାନଙ୍କୁ ଗାଁ ଗହଳରେ ଦ୍ୱାର ଦ୍ୱାର ହୋଇ ବୁଲି ଭିକ୍ଷା କରିବା ଏକ କରୁଣ କାହାଣୀ । ଏମାନଙ୍କ ପାଇଁ ସରକାର ସମାଜ ଦାୟିତ୍ୱ ବହନ କରି ସମାଜକୁ ସୁନ୍ଦର କରିବା ଉଚିତ । ସେମାନେ ଇଂଲଣ୍ଡରେ ଟୋକେଇ, ପାଚିଆ, ଥଳି, ଆସନ, ବିଛଣା, ମସିଣା ଏହାକୁ ବୁଣି ଜୀବିକାର୍ଜନ କରନ୍ତି । ଏହାଦ୍ୱାରା କାର୍ଯ୍ୟକରିବାର ଶକ୍ତିର ପୂର୍ଣ୍ଣଉଦ୍ଧାର ହେବା ସଙ୍ଗେ ସଙ୍ଗେ ରୋଗ ଚିକିତ୍ସା ମଧ୍ୟ ହୋଇପାରିବ ।

କୁଷ୍ଠ ରୋଗୀକୁ ଆଫ୍ରିକାରେ ଜୀଅନ୍ତା ପୋଡ଼ିପକାନ୍ତି । ଚୀନରେ ଜୀଅନ୍ତା ପୋତି ପକାନ୍ତି । ଏମାନଙ୍କର କଲ୍ୟାଣ ସାଧନ ରୋଗରୁ ମୁକ୍ତ କରିପାରିବ । ମାନସିକ କଷ୍ଟ ଦୂର କରିପାରିବ । ଗାନ୍ଧିଜୀ କୁଷ୍ଠରୋଗର ସେବା କରି କହି-ଥିଲେ, "କୁଷ୍ଠ ରୋଗୀର କାମ କେବଳ ଡାକ୍ତରୀ ନୁହେଁ ଏହା ମାନସିକ ଚିନ୍ତା ଦୂରକରେ ରୋଗୀର ମନରେ ଆନନ୍ଦ ଆଣେ, ଗ୍ରାମ ତଥା ଦେଶର ଉନ୍ନତି ହୁଏ ।

—୦—